ନୂତନ

# କଳିକତା ଚଉତିଶା ।

ଶ୍ରୀ ବାସୁଦେବ ନାୟକଙ୍କ ଦ୍ୱାରା

ରଚିତ

ଶ୍ରୀ ନାରାୟଣ ଦାସଙ୍କ ଦ୍ୱାରା

ପ୍ରଥମବାର ପ୍ରକାଶିତ ।



Printed by M. Ch. Das.
AT THE MANOMOHAN PRESS.
65/1 NEBUTALA LANE,
CALCUTTA.
1923.

ମୂଲ୍ୟ ଦୁଇପଇସା ମାତ୍ର ।

# କଳିକତା ଚଉତିଶା ।

କଳିକାଳର ଦେବତା କୋଖାଙ୍କ ଅଛଇ ।
କରିଛନ୍ତି ରାଜଧାନୀ କଲିକତା ସେହି ।
କେତେ ତୋର ଗୋ । କଳିର ଅମରାବତୀ ପରି ଗୋ । ୧ ।
ଖଣ୍ଡା ଯେ ଖପର ଧରି ବିଜେ କାଳୀମାତ ।
ଖଣ୍ଡେ ଭବଭୟ ଯାର ନାମ ନେବା ମାତ୍ର ।
ଖଳନାଶି ଗୋ । ଖରେ ମୋ ଦୁଃଖ ଦଅ ନାଶି ଗୋ । ୨ ।
ଗରବ ଗଞ୍ଜନୀ ଗଙ୍ଗାଧର ବକ୍ଷେ ଛିଡ଼ା ।
ଗଳେ ଲଳେ ମୁଣ୍ଡମାଳ ଦଶମୁଖ ପ୍ରଭା ।
ଘଙ୍ଗାଙ୍କାଳି ଗୋ । ଗୁଣ ତୋର କେ ପାରିବ କଳି ଗୋ । ୩ ।
ଘର୍ଘର-ବାଦିନୀ ମାତ ଘଣ୍ଟା-ନିନାଦିନୀ ।
ଘୋଡ଼ାଇ ରଖିଛି ସର୍ବ ବଙ୍ଗବାସୀ ପ୍ରାଣୀ ।
ଘନ ଶ୍ୟାମା ଗୋ । ଘରେ ଘରେ ବିଜେ ତୁ ଅଭୟା ଗୋ । ୪ ।
ଅଜ୍ଞାନ ବାଳକ ମୁଁ କି ବର୍ଣ୍ଣିବ ତୋ ଗୁଣ ।
ଅଜ୍ଞ ଦେଲେ କଳକତା ଦେଖିବି ବର୍ତ୍ତିନ ।
ଘନାଶି ଗୋ । ଅଦେଖିଲା କଥା ସର୍ବ ଦେଖି ଗୋ । ୫ ।

ନବଣ ପଣ୍ଡା ବନ୍ଧିଛି ହାଟ ମନୋହର ।
ଗୃହପଇସା ଟିକଟ ଚଉଅ ଖଃନାଇ ।
ନତୁକର ହେ । ଭଇରର ଜୀବଜନ୍ତୁ ଛନ୍ତି ହେ । ୬ ।
ଛଟକେ ଛପନ କୋଟି ଜୀବଜନ୍ତୁ ଯେତେ ।
ଛବ ଆଙ୍କି ଯାଦୁଘରେ ରଖିଛି କୌତୁକେ ।
ଛଉ ନେଇ ହେ । ଛଡା ବାଉ ଯିବ ଯିମା ଦେଇ ହେ । ୭ ।
ହାଟହୋଇ ନଇଦେହେଁ କଳକାଲେ ଭାଇ ।
ଜୀବନ ସଫଳ କର ଲୁହାକଲେ ଗୃହିଁ ॥
ଜିଣା ଯିବ ହେ । ଜଗତରେ ଏବି ଅସମ୍ଭବ ହେ । ୮ ।
ଝାମାଇଠା ପଥରରେ ପଥ ଅଛି ବାନ୍ଧି ।
ଝଟଝଟ ଦିଶୁଅଛି ସହରର ସନ୍ଧି ।
ଝାନ୍ଦାର ହେ । ଝାନ୍ଦ୍ରଜନ୍ମ ସକାଳ ସନ୍ଧ୍ୟାର ହେ । ୯ ।
ନଅିଁ ନାହିଁ ଜଳାଉଛି ଇଲେକ୍‌ଟ୍ରିକ୍ ବତୀ ।
ନାନାରଙ୍ଗରେ ଆଲୁଅ ଜଳେ ରଉଁକିଭ ।
ଲୀଣୀ ଧନ ହେ । ନ ହୋଇବ ବଚ୍ଛିହିଁ ବାରଣ ହେ । ୧୦ ।
ଟେଲିଗ୍ରାଫ୍ ବୃକ୍ଷରେ ଭାଇ ଟ୍ରାମଗାଡି ଦେଖି ।
ଟିକଟ୍ କଲେକ୍ଟରମାନେ ଯାଅନ୍ତି ଡାକି ।
ଟୋପଗଲେ ହେ । ଟେଲିବ ଜୀବନ ରହିଁ ଭଲେ ହେ । ୧୧ ।

ଠାବେ ଠାବେ ବସିଅଛି ଇଞ୍ଜିନୀର ଦଳ ।
ଠଉରାଇ ହେବ ନାହିଁ ସେ ଆଶ୍ଚର୍ଯ୍ୟ ଖେଳ ।
ଠିକ ସ୍ଥାନ ହେ । ଠାବ ଦେଖି କରିଛି ଷ୍ଟେସନ ହେ । ୧୨ ।
ଡଙ୍ଗା ବୋଟ ଷ୍ଟିମାର ଯାହାଜ ନାବ ମାନ ।
ଡ଼ିଙ୍ଗେ ଲାଗିଛି ଏମାନଙ୍କ କାର୍ଯ୍ୟମାନ ।
ଡ଼ାକହାକ ହେ । ଡ଼ଗରେ ପକାନ୍ତି ମାଲ ଝାଙ୍କି ହେ । ୧୩ ।
ଢାଲ ବନ୍ଧୁକ କମାଣ ତୁଣ୍ଡ ତରୁଆର ।
ଢାଲେ ଗୋରା ପଲଟଣ ଘେରିଣ ଚତ୍ୱର ।
ଚଳି ଚଳି ହେ । ଚଳିବୁ ଦେଖିଲେ ଭାଙ୍ଗ ଗୁଳ ହେ । ୧୪ ।
ଅଣ ଅଯୁତ ତାହାଙ୍କୁ ନାହିଁ କେଉଁ କଥା ।
ଅଙ୍କେଣେ ପାରନ୍ତି କରି ସ୍ୱର୍ଗର ଦେବତା ।
ଅଦଭୁତ ହେ । ଆକାଶରେ ବାହୁଛନ୍ତି ରଥ ହେ । ୧୫ ।
ତାର ଏୟାରଲେସ ତାର ପୁଣି ଟେଲିଫୋନ ।
ତହୁଁ ବିଦେଶେ ଖବର କରଇ ଗମନ ।
ତାକୁ ବଳି ହେ । ତର୍କେ ଏୟାରୋପ୍ଲେନ ଯାଏ ଚଳି ହେ । ୧୬ ।
ଥିଏଟର ଯାତ୍ରା ଦେଖ ପୁଣି ଗ୍ରାମୋଫୋନ ।
ଥରେ ସର୍କସ ଦେଖିଲେ ହେବୁ ହତଜ୍ଞାନ ।
ଥର୍ଲେ ଲାଗ୍ୟ ହେ । ଥାଉ ଜୀବ ଦେଖି ପାରୁ ସଙ୍ଗ ହେ । [illegible] ।

ଦଉଡ଼ୁଛି ରାସ୍ତା ପରେ ଗାଡ଼ି ଧାଡ଼ି ଧାଡ଼ି ।
ଦ୍ୱି ଚକ୍ର ସାଇକେଲ୍ ଗୋରୁ ଘୋଡ଼ା ମଟ୍‌ର ଗାଡ଼ି ।
ଦେଖ ଦେଖ ହେ । ଦୁର୍ଦ୍ଦଶା ମେଣ୍ଟିବ ଚଢ଼ି ଶିଖ ହେ । ୧୮ ।
ଧାରେ ଧାରେ ପ୍ରତି ଘରେ ଲଗିଅଛି ନଳ ।
ଧୀରେ ଗଙ୍ଗା ଜଳ ନେଇ ଚଳନ୍ତି ସକଳ ।
ଧରଣୀରେ ହେ । ଧାଡ଼ା ପରି ଚଳନ୍ତି ସକଳେ ହେ । ୧୯ ।
ନିତି ପ୍ରତି ଦୁଇ ବେଳା ଘରେ ଘରେ ପାଣି ।
ନିମିଷେ ବିଳମ୍ବ କଲେ ନ ପାଇବୁ ପୁଣି ।
ନିୟମରେ ହେ । ନିଅ ପାଣି ଯେ ଯାହା ବେଗରେ ହେ । ୨୦ ।
ପ ଖୁଆଇନ ଯେ ଜାରି ହୋଇଛି ସହରେ ।
ପଚରୁ ପାଦରେ ଅଶ୍ରୁମାସ ଭୁଲ ଗଲେ ।
ପରମାଦ ହେ । ପଥ କଳି ନ ଗଲେ ପ୍ରମାଦ ହେ । ୨୧ ।
ଫେସନରେ ଠାବେ ଠାବେ ବେଶ୍ୟା ଛନ୍ତି ବସି ।
ଫୁଲପଣେ ଛିଟକରେ ଫେଷେ ନାଁଇନ୍ତି ଝାଙ୍କି ।
ଫାନ ଫାନ ହେ । ଫାଟିଲେ କପାଳ ଯିବ କଣ ହେ । ୨୨ ।
ବଡ଼ ବଜାରେ ବସିଛି ହାଟ ମନୋହର ।
ବଡ଼ ଏହାଠାରୁ ହକସାହେବ ବଜାର ।
ବୁଲି ଦେଖ ହେ । ବାବୁଗିରି ଦେଖି ନ ଭମକ ହେ । ୨୩ ।

ବସାଇଛୁ କି ରଙ୍ଗରେ ଗଙ୍ଗାନଦୀ ପୋଲ୍ ।
ଭଲ କାରିଗର ଅଟେ ଇଂରାଜୀ ସର୍କାର ।
ଭାଗ୍ୟେ ଥିଲେ ହେ । କେତେ ସ୍ନାନ କରି ଗଙ୍ଗାଜଳେ କେ ।୨୪।
ମନୋହର ଅଟେ ପର୍ଶୁରାମଙ୍କ ମନ୍ଦିର ।
ମୂର୍ଚ୍ଛା ଯିବୁ କାରିଗିରି ଦେଖି ସେ ସ୍ଥାନର ।
ମର୍ତ୍ତ୍ୟପୁରେ ହେ । ମଘବା ପୁରରୁ ସେହୁ ବଳେ ହେ । ୨୫ ।
ଅମୃତ ପନ୍ଥ ଦେଖ ସେ ହାସପାତାଳ ।
ଯନ୍ତ୍ରଣା ଚିତ୍କାର ହାହାରବ ନିରନ୍ତର ।
ଯାତନାରେ ହେ । ଯେତେ ପାପ ପ୍ରାଶ୍ଚିତ୍ତ ସେଠାରେ ହେ ।୨୬।
ରସାମଣ୍ଡଳେ ନ ଥିବ ଏପରି ସହର ।
ରସିକ ରସିକାମାନଙ୍କର କାରବାର ।
ରଙ୍ଗେ ଦେଖି ହେ । ରସପଙ୍କେ ଯିବୁ ବୁଡ଼ି ଲକ୍ଷି ହେ । ୨୭ ।
ଲାଗିଛି ଆନନ୍ଦ କଉତୁକ ସଦାବେଳେ ।
କେତେଲକ୍ଷ ଲୋକମାନ ବଡ଼ ସହର ମଧ୍ୟରେ ।
ଲକ୍ଷ ନାହିଁ ହେ । ସବୁ ଦ୍ରବ୍ୟ ବିକ୍ରି ହୁଏ ତହିଁ ହେ ।୨୮।
ବାଟେ ବାଟେ ହାଟ ବସିଅଛି ଦେଖ ଭାଇ ।
ଭାଗ ମାଥା ଛୁଡ଼ି ସବୁ ମିଳିବଟି ତହିଁ ।
[illegible]ଓ ମଜ୍ଜା ହେ । ବୁଲି ଲଥ ଯେ ଯାହାର ଖୋଜା ହେ ।୨୯।

ଅବ ଦାହ ସହରରେ ଉମିଚନ୍ଦ ସାହୁ ।
ସଜଡ଼ା ରହୁଛୁ ଉଚ୍ଚ ସଦା ଭର୍ତ୍ତି ଭାଠ ।
ଅମସୁନ୍ଦ୍ ହେ । ସାଧେ ଉଲଟଙ୍କା ମନ୍ଦ୍ରାଟିଲୁ ହେ । ୨୦ ।
ଶୋଲକ୍ଷୋଷ ଅପୃଭନ ଅନ୍ତର ସହର ।
ସକଳ ଜାଉ ଅସ୍ମିଣ ଦୋଉଇନ୍ତୁ ମେଳ ।
ଭବା ଭାଲୀ ହେ । ସାନନ୍ଦେ ଉଖନ୍ତୁ ସବଂ ମେଲି ହେ । ୨୧ ।
ସହରରେ ଛନ୍ତି ଭାଇ ଯେତେ ବଡ଼ ଲୋକ ।
ସେମାନଙ୍କେ କୀର୍ତ୍ତି ଉନ୍ତୁ ରହେନ୍ତୁ ମହୀକ ।
ହବେ ଅର୍ ହେ । ସୌଦାଗର ଜମିଦାର କେତୁ ହେ । ୨୨ ।
ଭର୍ଷେ ଦେଖ ଉଇମାନ୍ତୁ ମୁଣି ବଡ଼ିଲାଟ ।
ହେଡ଼ପୋଷ୍ଟ ଅଫିସ ନିକଟରେ ହାଇକୋର୍ଟ ।
କାଳୁନାରେ ହେ । ହାଭଡ଼ାଭ୍ ରେଲ ଗଙ୍ଗାଧାରେ ହେ । ୨୩ ।
କ୍ଷୋଭେ ବାସୁଦେବ ଚନ୍ଦ୍ର ପାଇଲନନ୍ଦନ ।
କ୍ଷମ ଅପରାଧ ମାତ କାଳୀ ଗଉରୁଙ୍ଗୀ ।
ସମାବଲ ଗୋ । ସିଇରେ ଭୁ ଉଡ଼ାଇଛୁ କୀର୍ତ୍ତି ଗୋ । ୨୪ ।

ସମାପ୍ତ ।